ଶ୍ରୀ କୃଷ୍ଣଦାସ ବୈଷ୍ଣବ

ସ୍ୱର୍ଗ-ପସରା

ବା

# ଯମ ଉପଦେଶ ।



{ ଶୋକେ ଦୁଃଖେ ଢଳି ଯାଉଛ ସଡ଼ି,
ସ୍ୱର୍ଗ ସୁଖ ଲଭ ଏହାକୁ ପଢ଼ି । }

ଉତ୍ତରଣୀ

ଶ୍ରୀ ବ୍ରାହ୍ମାନନ୍ଦ ଷଡଙ୍ଗୀ

ପ୍ରକାଶକ ।

ଓଡ଼ିଶା ପେଟ୍ରିୟଟ ପ୍ରେସରେ ମୁଦ୍ରିତ ।

PRINTED BY B. SARANGI.

THE ORISSA PATRICT PRESS

MAHAMMADIA BAZAR.

CUTTCK

1910.

ମୂଲ୍ୟ ଏକଅଣା ମାତ୍ର ।

# ଯମ ଉପଦେଶ ।

ରାଗ ବସନ୍ତ ଓ କଳଶା ବାଣୀ ।

ନମୋ ନମୋ ବ୍ରଜେନ୍ଦ୍ର ନନ୍ଦନ ଘନଶ୍ୟାମ । ନମୋ ନମୋ ଦେବାଧି ଗୋବିନ୍ଦ ଅଭିରାମ । ୧ । ନମୋ ନମୋ ବୃନ୍ଦାବନଚନ୍ଦ୍ର ବଂଶୀଧର । ନମୋ ନମୋ ମୁକୁନ୍ଦ ଅଖିଳ କୃପାକର । ୨ । ନମୋ ନମୋ ଦୈତ୍ୟାରି କରୁଣା ନିଧାନ । ନମୋ ନମୋ ପାପହର୍ତ୍ତା କର୍ତ୍ତା ଜନାର୍ଦ୍ଦନ । ୩ । ନମୋ ନମୋ ଦାମୋଦର ଅବ୍ୟୟ ଅଚ୍ୟୁତ । ନମୋ ନମୋ ଭକ୍ତବନ୍ଧୁ ଅନାଦି ଅନନ୍ତ । ୪ । ନମୋ ନମୋ କଂସକେଶି ଶକଟା ଭଞ୍ଜନ । ନମୋ ନମୋ ଗୋପୀନାଥ ନୟନ ରଞ୍ଜନ । ୫ । ଦୟାକର ନାଥ ସୁଚିତ୍ତରେ ଅବଧାନରେ । କଲି ଯାହା ବର୍ଣ୍ଣିବି ମୁଁ ଯଥା ସୁଲଗ୍ନରେ । ୬ । ସେ ବିଷୟେ ଅଜ୍ଞା ମୋତେ କର ପୀତବାସ । କହଇ ଶ୍ରୀକୃଷ୍ଣ ଦାସ ପ୍ରଭୁ ମନ ଆଶ । ୭ । ଅତ୍ୟନ୍ତ ନିର୍ମଳ ଭାବେ ଶୁଣ ସାଧୁଜନ । ଇତିହାସେ ଯାହା ପୂର୍ବୁ ହୋଇଛି ବର୍ଣ୍ଣିତ । ୮ । ହିରଣ୍ୟ କଶିପୁ ତାହା ଅନୁଜ ମରଣେ । କହିଅଛି ମାତା ବଧୂ ଶୋକ ନିବାରଣେ । ୯ । ସପ୍ତମ ଦ୍ୱିତୀୟ ଅଧ୍ୟା ନବ ଅକ୍ଷରରେ । ହୋଇଅଛି ଯଥା ମତେ ସୁଜ୍ଞାନ ପକ୍ଷରେ । ୧୧ । ତହିଁରୁ ମୁଁ ସୂଚୀ ସୂତ୍ରେ କରୁଛି ଲେଖନ । ଚଉଦ ଅକ୍ଷର ପଦ ନୁହେ ବର୍ଦ୍ଧମାନ । ୧୧ । ଗଦା କରେ ଧରି ହିରଣାକ୍ଷ ରବିତଳେ । ଯୁଦ୍ଧକର ନୃପଙ୍କୁ ଜିଣିଲା ବାହୁବଳେ । ୧୨ । ମର୍ତ୍ତ୍ୟରେ ନ ପାଇ ଯୋଦ୍ଧା ପାତାଳେ ପଶିଲା । ନାଗବଳ ପରାଜିଆର ଅସ୍ଥାନେ ବସିଲା । ୧୩ । ତଦଅନ୍ତେ ମଧ୍ୟ ପାତାଳିକୁ ଚଳିଲା ବେଗେ । ମିଳିଲା ବରୁଣ ପୁରେ ଅତି ଉଗ୍ରତେଜେ । ୧୪ ।

ଦଇତ୍ୟଙ୍କୁ ଦେଖି ଜଳେ ସ୍ୱର ଭସ୍ମେ ଥର । ବୋଲଇ ନ କର ଯୁଦ୍ଧ
ନୃହଇ ବଇର । ୧୫ । ତାହା ଶୁଣି ହିରଣାକ୍ଷ ନ ଘେନିଲା ମନେ ।
ନିର୍ଭୟେ ରହିଲା ବୀର ବରୁଣ ଭୁବନେ । ୧୬ । ଏଥି ପୂର୍ବୁଁ ବସିଛ
ମୂରଛି ଧର ହର । ପଡଥିବା ସପ୍ତ ପାତାଳରୁ ବସୁବଶି । ୧୭ । ଦନ୍ତ
ଅଗ୍ରେ ଧରି ସେ ପୁରବେ ରହିଥିଲେ । ହିରଣାକ୍ଷ ଦର୍ପ ଦେଖି ଯୁଦ୍ଧରେ
ମାଇଲେ । ୧୮ । ତାହାଶୁଣି ହିରଣ୍ୟକସିପୁ କୋପ କଲା । ହରଙ୍କି
ବିନାଶ ପାଇଁ ଦଇତ୍ୟ ବରଗିଲା । ୧୯ । ଆଦେଶେ ଚଳଲେ ଦଇତ୍ୟ
ବନଗ୍ରାମ ପୁର । ଅନେକ ନାଶିଲେ ନର ଜନ୍ତୁ ଅଧ କର । ୨୦ ।
ଆବର ସୁଯଜ୍ଞ ଋଷିଙ୍କର ଭଗ୍ନକଲେ । ସ୍ୱଧର୍ମେ ଯେତେକ ଥିଲେ ତାଙ୍କୁ
ନ ରଖିଲେ । ୨୧ । ଦେବ ବୃକ୍ଷ ଯେତେ ଥିଲା ପରଶୁର ଘାତେ ।
ଛେଦ ପକାଇଲେ ସବୁ ଅତି ଦୁଷ୍ଟ ଚିତ୍ତେ । ୨୨ । ଏହିପରି କ୍ରମେ ଧୂର୍ତ୍ତ
ହୁଅନ୍ତେ ରାକ୍ଷସ । ଲେଖିବାକୁ ଶେଷହେଲା ଦ୍ୱାଦଶ ବରଷ । ୨୩ ।
ତାହାଦେଖି ଦେବେ ଆକାଶରେ ଗତାଗତ । ନ ହୋଇ ଲୁଚିଲେ
ଭଦ ଅନ୍ତରେ ଦ୍ରବତ । ୨୪ । ଘୋରବନୁ ପଶୁମାନେ ଗିରି ଦ୍ରୋଣ
କ୍ଷେତ । ଲୁଚିଲେ ପ୍ରାଣର ଭୟେ ଦବ୍ୟ ଭୟ ଗ୍ରସ୍ତ । ୨୫ । ଏଣେ
ଏତେ କର୍ମ କାଣ୍ଡ କଲେ କ୍ରୋଧିଣସ । ତେଣେ ପ୍ରେତକାର୍ଯ୍ୟ ସାରି
ହିରଣ୍ୟ କଶ୍ୟପ ।୨୬। ଅନ୍ତଃପୁରେ ବଜେ କରୁଁ ଦେଖିଲା ପ୍ରତ୍ୟକ୍ଷ ।
ରୋଦନ କରନ୍ତି ମାତା ବଧୂ ଭ୍ରାତୃ ପକ୍ଷ । ୨୭। ତାହା ଦେଖି ହିରଣ
ପୁତ୍ର ଲୋଟୁଛି ଧରଣୀ । ଧରି ଅଙ୍କେ ବସାଇଲା ନୃପବର ଆଣି ।୨୮।
ଅଙ୍ଗୁ ଧୂଳ ଝାଡିଦେଲା ଅନୁରାଗ ମନେ । ମାତା ଭ୍ରାତା ପତ୍ନୀ ପାଶେ ବସାଇ
ସ୍ନେହେନେ । ୨୯ । କହଇ ମଧୁରେ ବାଣୀ ଶୁଣ ତୁମ୍ଭେ କଥା । ନିବଗ୍ରହ
ରୋଦନ କରିବା ଅଟେ ବୃଥା । ୩୦ । ବିଷୟୁ ବିପଦେ ଶତ୍ରୁ ହୁଅନ୍ତି
ବନ୍ଧୁତ । ଗୁରନ୍ତି ସମ୍ପଦ ଲୋଭେ କର ପ୍ରାଣେ ହତ । ୩୧ । ଏଥିରୁ
ଯୁଦ୍ଧରେ ମଲେ ସ୍ୱର୍ଗବାସ ଅଛି । ଶୁଣ ଏଥୁଅନ୍ତେ କଥା ଆବର
କହୁଛି । ୩୨ । କଷ୍ଟ ମାୟା ଖେଳଘର ଶିଶୁ ଖେଳ ପରି । କ୍ଷଣକେ

ନିମିଷ କ୍ଷଣକରେ ନାଶକର ।୩୩। ବୁଝିବଲେ ବିଗ୍ରହରେ ସେହିପରି ହୁଏ । ଅକର୍ମେ ପ୍ରବେଶ ହୋଇ ଜୀବ, କ୍ଳେଶ ସହେ ।୩୪। କର୍ମ ଭୋଗ ଅନ୍ତେ ପୁଣି ଚଳେ କର୍ମପଥେ । ବାନ୍ଧାଗଲେ ଧର୍ମ ରଜ୍ଜୁ କେ ଚଢଇ ରଥେ । ୩୫ । ଏହିପରି ଗତାଗତ ହୁଏ ସବୁ ଜୀବ । ନଜାଣଇ କିସ ହାନି କିସ ଅବା ଲାଭ ।୩୬। ମୋ ଅନୁଜ ଘଟଣା ରହିଛି ଇତିହାସେ । ଥିଲେ ଏକ ନୃପବର ସୁଯଜ୍ଞ ନାମେ ସେ । ୩୭ । ରାଜାପଣ କରୁଥାଇ କପାଳ ଦେଶରେ । ସମୃଦ୍ଧର ସୀମା କାହିଁ କହିଲେ ନ ସରେ ।୩୮। ତିନିଶତ ଯୋଜନ ଅଟଇ ତାର ପୃଥ୍ୱୀ । ଅଶ୍ୱ ଗଜ ଓଟ ଖର ଲକ୍ଷ ଲକ୍ଷ ରଥୀ । ୩୯ । ସେ ନୃପ ବିବେକ ପଣେ ଅଟଇ କୁଶଳ । ତା ସମାନେ ଜଣେ ଆଉ ନାହିଁ ରବିତଳ । ୪୦ । ବହୁଗୁଣ ବର୍ଣ୍ଣନରେ ସଦା ଅନୁରାଗୀ । ବର୍ଜ୍ଜି ଅଛି ହୃଦସ୍ଥିରୁ ହିଂସାଲୋଭ ତ୍ୟଜି । ୪୧ । ତଥାପି ତାହାର ବଇରବ କର୍ମ ଶେଷ । ହେଲା ବିଧିବଲେ ଶତ୍ରୁ ମିଳିଲା ତା ଦେଶ ।୪୨। ତାହା ଜାଣି ଯଜ୍ଞରାଜା ସୈନ୍ୟ ଦଳ ଘେନି । ଭେଟିଲା ଶତ୍ରୁକୁ ଯାଇଁ କରି ବାଦ୍ୟ ଧ୍ୱନି । ୪୩ । ବିଷମ ସଂଗ୍ରାମ ହେଲା ଦୁଇଦଳ ଭେଟେ । ମଲେ ଲକ୍ଷ ଲକ୍ଷ ସୈନ୍ୟ ଶୋଣି ବନ୍ୟେ ମୋଟେ । ୪୪ । ବନ୍ଧୁକାଳ ବହିଗଲା ବିଧି ଲେଖା କର୍ମେ । ଥିଲା ଯାହା କେହ୍ନୁ ତାହା ଆନ କରେ ଭ୍ରମେ । ୪୫ । ବସନ୍ତ ପଞ୍ଚମୀ ଗତେ ଷଷ୍ଠଦଶ ଦିନ । ପଡିଲେ ସଂଗ୍ରାମେ ରାଜା ସୁଯଜ୍ଞ ପ୍ରଧାନ । ୪୬ । ଅବଶେଷ ସୈନ୍ୟଥିଲେ ଯେତେ ପଳାଇଲେ । ରାଣୀହଂସପୁରେ ମିଳି ବାରତା କହିଲେ । ୪୭ । ଶୁଣି ଦୁଃଖେ ରାଣୀମାନେ ଚେତିଲେ ସଦନ । ଆବର ସଙ୍ଗରେ ଗଲେ ଜନ୍ମିତ ନନ୍ଦନ । ୪୮ । ମାତା ପୁତ୍ର ମେଳ ହୋଇ ସଂଗ୍ରାମ ଭୂମିର । ପ୍ରବେଶି ଦେଖିଲେ ଅଛି ନୃପ କଲେବର । ୪୯ । ପଡିଛି ବିଭ୍ରମ ହୋଇ ଧୂଳି ସର୍ବାଙ୍ଗରେ । ନାଶିଅଛି ବିଶେଷତଃ ବିଚିତ୍ର ରଙ୍ଗରେ । ୫୦ । ଖଣ୍ଡଖଣ୍ଡ ହୋଇଅଛି ସୁରନ୍ନ କବଚ । ଅଲଙ୍କାର ନାହିଁ ଅଙ୍ଗେ ଦିଶୁଛି ପ୍ରପଞ୍ଚ । ୫୧ । ରୁଧିର

ବନ୍ଧୁଛ ଭୁଣ୍ଡ଼ୁ କେଶଛିନ୍ନ ମୁଣ୍ଡେ । ଉଲଗ୍ନ ହୋଇଛୁ ଅଙ୍ଗ ବସ୍ତ୍ର ନାହିଁ ଖଣ୍ଡେ ॥ ନସ୍ୟନ ଲମ୍ବିଛେ ଲୁଚ ଦଶେ ଭୟଙ୍କର । ଓଷ୍ଠରେ ଉଡଛୁ ଦନ୍ତ ଦଶୁଛ ବାହାର । ୫୩ । ପୁଣି ନାଶାଦ୍ୱାରୁ ରକ୍ତ ସଧୀରେ ବନ୍ଧୁଛ ଧଉଥିବା ଅସୁଧ ଭଗ୍ନକୁ ପାଇଅଛୁ । ୫୪ । ଏମନ୍ତ ଅବସ୍ଥା ଦେଖି ସ୍ୱପତ୍ନୀ ତାହାର । ହୃଦରେ ପ୍ରହାର କର ଗଡନ୍ତ୍ର ମହୀର । ୫୫ । ମହାଶୋକେ ଭକ୍ତ ହୋଇ ମୃତ୍ୟୁ ପିଣ୍ଡ ଧର । ରୋଦନ କରନ୍ତି ଉଚେ ଯେସନେ କୁରରୀ । ୫୬ । କେ ବୋଲଇ ହୋ ନାଥ ତୁମ୍ଭର ମୃତ୍ୟୁ ଦେଖି । କସ ପ୍ରୟୋଜନ ଅଛୁ ପିଣ୍ଡେ ପ୍ରାଣ ରଖି । ୫୭ । କେ ବୋଲଇ ଅଭ ଶୀଘ୍ରେ ସଙ୍ଗେ ନଅ ମୋତେ । କେ ବୋଲଇ ପ୍ରାଣ ମୋର ନ ରହୁ ଜଗତେ । ୫୮ । କେ ବୋଲଇ ଦୟା ହିନ କୋହ ମୋତେ କହ । କେ ବୋଲଇ ଚନ୍ଦ୍ରାନଳେ ଦହୁ ଅଛୁ ଦେହ । ୫୯ । କେ ବୋଲଇ ସ୍ୱଷ ଗଲ୍ଲ ଦୁଃଖ ହେଲ୍ଲ ମୂଳ । କେ ବୋଲଇ ବଧାତା ହୋଇଲ୍ଲ ପ୍ରତକୂଳ । ୬୦ । କେ ବୋଲେ ସ୍ୱବର୍ଣ୍ଣ ବାହ୍ମା କରିବା ଗୋ କସ । କେ ବୋଲଇ ହସ୍ତେ ଥାଉ ପଡବା ହୁତାଶ । ୬୧ । କେ ବୋଲଇ ମୋ ମନକୁ ଅଇଲ୍ଲ ସେ କଥା । କେ ବୋଲଇ ବଞ୍ଚିଲେ ବଢିବ ମନ ବ୍ୟଥା । ୬୨ । କେ ବୋଲଇ ଅମ୍ଭମାନଙ୍କର କର୍ମ ଫଳ । ସରଲ୍ଲ ଅଜନ୍ମ ଥିବା ଜୀବନ ନ୍ରିଫଳ । ୬୩ । ଏହି ପର କହି ଉଚେ ରୋଦୁ ସ୍ତ୍ରୀମାନେ । ଅବର କାନ୍ଦନ୍ତି ପୁଞ୍ଜ ପିତା ସ୍ନେହ ମନେ । ୬୪ । ମହା ଗୋଳ ବଢିଲ୍ଲ ବେଳକୁ ବେଳ ଅତି । ପିଣ୍ଡ ଦାହ କରିବାକୁ ପ୍ରବେଶିଲେ ଜ୍ଞାତି । ୬୫ । ସେମାନେ ଦେଖିଲେ ସ୍ତ୍ରୀଙ୍କ କଠଣ ରୋଦନ । ଲେଶେ ନ ରହିଲ୍ଲ ଧୈର୍ଯ୍ୟ କରନ୍ତି କନ୍ଦନ ॥ ତଥାପି କେତେକବେଳ ଗତରେ ବଧିରେ । ଅଗ୍ନି ଯୋଗ କଲେ ପିଣ୍ଡ ଦହିବେ ସିଦ୍ଧିରେ । ୬୬ । ତାହା ଦେଖି ସ୍ତ୍ରୀ ପୁତ୍ର ପିଣ୍ଡକୁ ଧରିଲେ । କେ କରିବ ଅଗ୍ନି ଦାହ ଉଚ୍ଚରେ କହିଲେ ।୬୮। ଏମନ୍ତ ପ୍ରସଙ୍ଗ ଦେଖି ଜ୍ଞାତି ବନ୍ଧୁଜନେ । ଉପାୟ ନ ପାଇ ସର୍ବେ ବସିଲେ

ମଜନ୍ତେ । ୬୯ । ତେବେ ଏମାନଙ୍କ ଶୋକ ନିବର୍ତ୍ତ ନୋହନ୍ତ । କ୍ରମାଗତେ ଛନଦନ ଛନ୍ନସ୍ତି ଗଲା । ୭୦ । ଚତୁର୍ଥ ଦିନର ଗତେ ରଜନୀ ପ୍ରବେଶ । ନିବତ୍ତ ଅନ୍ଧାର ଅଚ୍ଛାଦନ୍ନ ଦଶଦିଶ । ୭୧ । କନ୍ଦନ ଶବଦେ ତ୍ରିଭୁବନ କମ୍ପିଲେ । ସମନ ଶ୍ରବଣେ ଶୁଣି ଦୂତେ ପଠାଇଲେ । ୭୨ । ସେ କହିଲେ ଯଥା ମତେ ସ୍ୱରୂପ ବଚନ । ଶୁଣି ଯମ ବାହାଇଲେ ତେଜ ନିଜାସନ । ୭୩ । ବସିଲନ୍ତି ଏମାନଙ୍କ ନ ବୋଧିଲେ ଯାଇଁ । ସର୍ବେ ହତ ହେବେ ଜୀବନକୁ ଆଶା ନାହିଁ । ୭୪ । ଏମନ୍ତ ବିଚାରି ନିଜ ରୂପ ଗୋପ୍ୟ କଲେ । ସପ୍ତମ ବରଷ ଦିବ୍ୟ ବାଳକ ହୋଇଲେ । ୭୫ । ଶୁଦ୍ଧ ବସ୍ତ୍ର ପରିଧାନ ଅଙ୍ଗରେ ଯତନ । ଗଳାରେ ତୁଳସୀମାଳ ଦିଶଇ ଶୋଭନ । ୭୬ । ମଥାରେ କୁଞ୍ଚିତ କେଶ ଭ୍ରମର ସଦୃଶ । ରଙ୍ଗବନ୍ତ ଯଷ୍ଟି ଖଣ୍ଡେ ଧରି କର ଦେଶ । ୭୭ । ବନାନ୍ତେ ପ୍ରବେଶ ହୋଇଲେ ରଣ ସ୍ଥାନ । ଦେଖିଲେ ସୁଶୀଳା ଆଦି ଯେତେ ସ୍ତ୍ରୀଜନ । ୭୮ । ପୁତ୍ର ସହିତରେ ମୃତ୍ୟୁ ପିଣ୍ଡ ଧରିଛନ୍ତି । ବନ୍ଧୁଜନମାନେ ସବୁ ଚିନ୍ତାର୍ଥୀ ଅଛନ୍ତି । ୭୯ । ସ୍ତ୍ରୀମାନଙ୍କର ଅଗ୍ରେ ମାୟାବୀ ବାଳକ । ଉଚ୍ଚ ହୋଇ କହଇ ବଚନ ଯଥା ତତ୍ତ୍ୱ । ଶୁଣ ସ୍ତ୍ରୀଜନପତ୍ନୀମାନେ ଏ ମୋର ବଚନ । ବୟସେ ଅଧିକ ଅଟ ବୁଦ୍ଧି ବଡ ସାନ । ୮୧ । ନ ଜାଣି କର୍ତ୍ତାର ମାୟା କାନ୍ଦୁଛ କାହିଁକି । ଅସ୍ଥିର ଜୀବ ଯନ୍ତ୍ର ଗଲାଣି ଚହିଁକି । ୮୨ । ପୂର୍ବ ଅର୍ଜିତ କରମ ସଙ୍ଗେ ଖେଳା କର । ଗଲା ଉଦ୍ଧ ଜନ୍ମ କର୍ମ ପଥ ଅନୁସର । ୮୩ । ଏ କଥା ଜାଣନ୍ତି ଭବେ ସୁଜ୍ଞାନୀ ପଣ୍ଡିତେ । ତାହାଙ୍କ ମୁଖରୁ ଶୁଣି ନାହିଁ କି କହୁଛ । ୮୪ । ରକ୍ତ ମାଂସ ଅସ୍ଥି ମିଶି ଶରୀର ନିର୍ମାଣ । ଏହାକୁ ଯେ ସତ୍ୟ ବୋଲି ଜାଣନ୍ତି ଯେବଣ । ୮୫ । ତାହାଙ୍କୁ କହିବା ଭବେ ଅତି ମୂଢ଼ ପ୍ରାଣୀ । ବିଶ୍ୱ କୃତ କର୍ମ ଭୁକ୍ତ ତା ତତ୍ତ୍ୱ ନ ଜାଣି । ୮୬ । ଏ ସଂସାର ମଧ୍ୟେ ଦେହ ବହୁ ମୁଁ ବାଳକ । ତୁମ୍ଭେ ଅଛ ନାରାୟଣ ତାହାନ୍ତି ପାଳକ । ୮୭ । ଆଶ୍ରମ ନ କର କାହିଁ ବୃଲେ ଭକତଙ୍କେ ।

କାଳ ଅହି ବ୍ୟାଘ୍ର ହିଂସ୍ର ନ ଭକ୍ଷିଲେ ବଳେ । ୮୮ । ତବା ମୋର ଦୁଃଖ ଦେଖି ଗର୍ଭରେ ଧାରଣ । କରିଥିଲା ଯେହୁ ସେହୁ କରେ ତ ରକ୍ଷଣ । ୮୯ । ବଚିତ୍ର ଈଶ୍ୱର ଲୀଳା ସଂସାରେ ପ୍ରକାଶେ । ବନାଶ ହୁଅଇ ପୁଣି କେହୁ ନାହିଁ ଶେଷେ । ୯୦ । କର୍ମ ମତେ ବାଳକ ହୁଅଇ ଯେବେ ରୋଗୀ । ମାତା ପିତା କର୍ତ୍ତା ହୋଇ ନୁହନ୍ତି ଭାଗୀ । ୯୧ । ତଥାପି କର୍ମର ଗତେ ବାଳକ ମରଇ । ଉଭୟ ଜନକ ଦୁଃଖ ଅଧିକ ବଳଇ । ୯୨ । ଏଣୁକରି ପ୍ରକୃତ ନୁହଇ ମାୟା ବସ୍ତୁ । ମୃତ୍ତିକା ଚକ୍ରରେ ଥୋଇ ରୂପ ଗଢା ହେଉ । ୯୩ । କର ଅତ ଯତ୍ନ ବଢେ ପ୍ରୟୋଜନେ ଆଣି । ବନା ପ୍ରୟୋଜନ ହେଲେ ପକାନ୍ତି ଧରଣୀ । ୯୪ । ପାବକ ଯେସନେ ଦାରୁ ମଧ୍ୟରୁ ପ୍ରକାଶେ ବାୟୁବଳେ ଥିବା ବନ ଅବଲମ୍ବେ ନାଶେ । ୯୫ । ସେହିପରି ପାପ କର୍ମ ନାଶଇ ଜୀବକୁ । ଯମ ନୁହନ୍ତି ତା କେହି ଅନକରିବାକୁ । ନାସାରନ୍ଧ୍ରେ ପବନ ଯେସନେ ପ୍ରକାଶଇ । ଘଟ ମଧ୍ୟେ ଥାଇ ମାତ୍ର ଭିନ୍ନ ପ୍ରବର୍ତ୍ତଇ । ୯୬ । ଆକାଶ ଯେମନ୍ତେ ବ୍ୟାପି ରହିଛି ଉପରେ । ଚନ୍ଦ୍ର ତାରା କେହି ସଙ୍ଗ ନୁହନ୍ତି ତାହାରେ । ୯୮ । ଏଣୁକରି ତ୍ରିଗୁଣ ଭକ୍ତିରେ ଜୀବ ଜାତ । ଗମଇଁ ସାଧନା ପଥେ ଆୟୁ ହେଲେ ଗତ ॥ ତେଣୁକରି କହଇ ଏ ସୂତ୍ରଙ୍କ ନୃପତି । ନୁହଇ ବଅର୍ଥେ କାନ୍ଦ ନ ବୁଝି ଯୁବତି । ୧୦୦ । ପଞ୍ଚମତ ଅବ ଶ୍ରୋତା ବକ୍ତା ଯେତେଥିଲେ । ସେ ସବୁ ଜୀବର ପଛେ ପଛେ ଏଥି ଗଲେ । ୧୦୧ । ମୃତ୍ତିକା ଶରୀର ଏହୁ ମୃତ୍ତିକାରେ ପତ । ଅଛି ଯଥା ମତେ ଗନ୍ଧ ପଡ଼ିଅଛି ଉତ । ତୁମ୍ଭେମାନେ ଶୋକ କର ବୃଥା କ୍ଳେଶ ପାଇଁ । ଜୀବ କ୍ରମେ ପ୍ରବେଶ ହେବନ ଯାଇଁ କାହିଁ । ୧୦୩ । ଆବର କଥାଏ ପୁଣି କହୁତ ସିଦ୍ଧାନ୍ତ । ପୂର୍ବର ବଚନ ଏହୁ ହୋଇଛି ଯେମନ୍ତ । ୧୦୪ । ଶିଶୁଙ୍କର ପଢ଼ାବେଳେ ଶୁଣିଅଛି ନହିଁ । ପକ୍ଷୀ ମାରିବାକୁ ଦେନେ ବ୍ୟାଧ ବନେ ଯାଇଁ । ୧୦୫ । ହସ୍ତେ ପାଶ ଧରି ପକ୍ଷୀ ଲୋଡ଼ଇ ତୁରିତ । ପ୍ରଭେ

ହେଲା ଯେଉଁଠି ପ୍ରବେଶିଲା କାଳଦୂତ । ୧୦୬ । ନବଭ ଲତାକୁ ଛାଣି
ବନ୍ଧୁହୂର ଗଲା । ପକ୍ଷୀଦଳ ଦେଖି ଯତ୍ନେ ଜାଲ ବସାଇଲା ।୧୦୭ ।
କୋମଳ ଅହାର ରଖି ଜାଲର ମଧ୍ୟର । ଘନ ଲତା ଦେଖି ଲୁଚି
ବସିଲା ଉଭର । ୧୦୮ । ସେଠାରେ କୁଳଙ୍ଗ ପକ୍ଷୀ ପତ୍ନୀ ସଙ୍ଗେ
ଘେନ । ବସିଥିଲା ଆନନ୍ଦରେ କର ମୁଖ ଧ୍ୱନ । ୧୦୯ । ଦଇବେ ସେ
ପକ୍ଷୀ ଜୀବ ଛନ୍ଦ ନ ଜାଣନ୍ତି । ବଗ ଦ୍ରବ୍ୟ ହେଲେ ତାକୁ ଅମୃତ
ମଣନ୍ତି । ୧୧୦ । ଲୁବ୍ଧକ ବନ୍ଧନ ଜାଲ ମଧ୍ୟରେ ଆହାର । ଦେଖି
ନେଉଛେ କୁଳଙ୍ଗ ରମଣୀ ପକ୍ଷୀ ଧୀର । ୧୧୧ । ପାଶ ଯୋଗେ ବନ୍ଧନ
ହୋଇଲା ପାଦ ବେନ । ଦେଖି ମହା ବ୍ୟାକୁଳେ ପକ୍ଷିଣୀ କଲା ଧ୍ୱନ ॥
ତାହାଦେଖି କୁଳଙ୍ଗ କରଇ ହା ହା କାର । ବୁଦ୍ଧି ନ ଦିଶଇ ବଳ-
ପଇ ଉଇଶ୍ୱର । ୧୧୩ । ବସିଥିବା ସ୍ଥାନ ତେଜି ବେଗେ ଉଡିଗଲା ।
ତହିଁ ଥିବା ଉଚ୍ଚ ବୃକ୍ଷ ଡାଳରେ ବସିଲା । ୧୧୪ । ଉର୍ଦ୍ଧ୍ୱକୁ ଅନାଇ
ଗ୍ରୁଛି ନିଶ୍ୱାସ ପ୍ରଖର । ଦିଗ ନ ଦିଶଇ ନେତ୍ରବନ୍ଧେ ଅଶ୍ରୁଧାର ।୧୧୫।
କର୍ମ ନିନ୍ଦା କରି ମୁଣ୍ଡ କଚାଡଇ ଡାଳେ । ବୋଇଲା ହୋଇଲା ଅସ୍ତ୍ର
ପ୍ରହାରରୁ ବଳେ । ୧୧୬ । କସ ମୁଁ କରିବ ବୁଦ୍ଧି ନ ଦିଶଇ ଆଉ ।
କଲା ପତ୍ନୀହୀନ ଧାତା ମୋର ଜୀବ ଯାଉ । ୧୧୭ । କେମନ୍ତେ
କରିବ ପତ୍ନୀ ହୀନେ ଗୃହବାସ । ଅର୍ଦ୍ଧ ଅଙ୍ଗ ନାରୀ ଅଟେ ଯେବେ
ହେଲା ନାଶ । ୧୧୮ । ବସାରେ ଅନାଇ ଥିବେ ବେନି ଶିଶୁମୋର ।
ପାଞ୍ଚୁ ଥିବେ ମାତା ପିତା ଆଣିବେ ଆହାର ।୧୧୯ । ପକ୍ଷ ଉଠି-
ନାହିଁ ଅଙ୍ଗେ କେମନ୍ତେ ବଞ୍ଚିବେ । ନ ଖାଇ ଆହାର ତାଙ୍କ-
ପାଇଁ କେ ଯତ୍ନିବେ । ୧୨୦ । ମାତାଙ୍କୁ ନ ଦେଖି ଅଛ ଅଛୁ-
ଲରେ ସ୍ନେହ । ନିଶ୍ଚେ ହୋଇବେ ନାଶ ଅବକାଶରେ ପଡ଼ି । ୧୨୧ ।
ମୁଁ ତାହା ଦେଖିଲେ ଧୈର୍ଯ୍ୟ ଧରିବ କେମନ୍ତ । ଅଟେନ୍ତି ମୋସୁତ
ବେନି ସ୍ନେହ ଅଧିଅନ୍ତ । ୧୨୨ । ଏମନ୍ତ ବିଚାରି ମନେ କରଇ
ଖେଦନ । ପୁଣି ବୋଲେ କାହାସଙ୍ଗେ ଯିବି ମୁଁ ସଦନ ।୧୨୩। କନ୍ଦୁ

କହନ୍ତି ହଳଚେତ ଷଣେ ଘଣେ ହୁଏ । ବେଲହେଲା ସପ୍ତସନ୍ତ ଗତର ସମୟେ । ୧୨୪ । ବ୍ୟାଧ ଆସି ପ୍ରବେଶ ହୋଇଲା ସେହି ସ୍ଥଳ । ଦେଖିଲା ଜାଲରେ ବନ୍ଧ ଅଛୁ ପକ୍ଷିକୁଳ । ୧୨୫ । କୌଶଳ ମାର୍ଗରେ ତାକୁ ଯତନେ ଧଇଲା । ନର୍ମିତ ପଞ୍ଜରା ଥିଲା ତହିଁରେ ଥୋଇଲା । ୧୨୬ । ମହା ଆନନ୍ଦରେ ଘେନ ଗଲା ନିଜପୁରେ । ଜୀବ ହତ୍ୟା ଲୋକ ସେହି ପାପେ ହନ ହରେ । ୧୨୭ । ଏଣୁକରୁ ଏହଂ ସର ଗତ ନୁହେ ସତ । ବେ କାହାର ସଙ୍ଗନୁହେ ପଥୁକା ଯେମନ୍ତ ॥ ଶ୍ରମବଳେ ଏକ ମେଳେ ହୋଇ ବସିଥାନ୍ତି । ଶ୍ରମ ସାର ଯେଝା କର୍ମେ ପ୍ରବେଶ ହୁଅନ୍ତି । ୧୨୯ । ସେହିପରି ଜୀବ ଘଟ ମଧ୍ୟେ ରହୁଥାଏ । ଅୟୁ ଶେଷ ମାତ୍ରେ ଘଟତ୍ୟାଗ କରଯାଏ । ୧୩୦ । ଏଣୁକରି ଏ ପ୍ରସଙ୍ଗ ଜାଣି ନ ଜାଣନ୍ତି । ଦଇବ ନର୍ମାଣ ସୃଷ୍ଟି ସତରେ ମଣନ୍ତି । ପ୍ରକାଶ କହନ୍ତି ଶିଶୁ ଏହା ଭୁମ୍ଭ ଆଗେ । ରୋଦନ ଏଠାରେ କଲେ ଭୁମ୍ଭେ ବସି ଯୁଗେ । ୧୩୨ । ତଥାପି ଉଠିବ ନାହିଁ ଏମୃତ ଶରୀର । ଏଥକୁ ଉପେକ୍ଷି ସର୍ବେ ଯାଅ ନିଜ ପୁର । ଏମନ୍ତ ବାଲକ ବାକ୍ୟ ଶୁଣି ସ୍ତ୍ରୀମାନେ । ଛାଡିଲେ ପ୍ରଧାନ ମାୟା ଜ୍ଞାନ ଘେନ ମନେ । ୧୩୪ । ପୁତ୍ରସଙ୍ଗେ ଘେନ ସର୍ବେ ଗଲେ ନିଜବାସ । ପିଣ୍ଡକୁ ଦହନ କଲେ ଯେତେ ଜ୍ଞାତଦାସ । ୧୩୫ । 'ଯମଉପଦେଶ ଦେଇ ଅନ୍ତର୍ଦ୍ଧାନେ ଚଳ । ଗଲେ ଅତ ହରଷରେ ସଞ୍ଜୀବନୀ ମିଳ । ୧୩୬ । ବହିଲେ ବାଲକ ରୂପଢେଙ୍କ ନିଜ ରୂପେ । ଦଣ୍ଡିଲେ ପାପୀଙ୍କି ପାପ ହେତୁ କନ୍ଦେ କଲେ । ୧୩୭ । ଏତେ କହୁ ହରଜ୍ୟ କସିପୁ ମାତା ଅଦ । ଛାଡିଲେ ମନରୁ ଚନ୍ତା ଜ୍ଞାନମାର୍ଗେ ଭେଦ । ଯଥାମତେ କୃତକର୍ମ କଲା ଦତ୍ତପୁତ । ତଦଅନ୍ତେ ହସ୍ତୁହଂସା କଲା ଅନୁଚିତ । ୧୩୯ । ଏକଥା ନାରଦ ଋଷି ଉତ୍ତରାଷ ବାଣୀ । ଅନୁରାଗେ ଯୁଧିଷ୍ଠିରଙ୍କ ଅଗ୍ରତେ ବଖାଣି । ୧୪୦ । ସେହିକଥା କ୍ରମେ କ୍ରମେ ବସ୍ତାର ହିହାଇଲା । ଅଭ୍ୟନ୍ତ ସୁଭକ୍ତି କଥା ସଂସାରେ ରହିଲା । ୧୪୧ ।

କହନ୍ତି ଶ୍ରୀକୃଷ୍ଣ ଦାସ ବୈଷ୍ଣବ ଏଗୀତ । ଶ୍ରୀହରି କୃପାରୁ ପଦ ସ୍ତବରେ ରଚିତ । ୧୪୨ । ଏକଶତ ବୟାଳିଶ ପଦରେ ଏ ଶେଷ । ହେଲା ସାଧୁ ଜନମାନେ ଘେନ ଦବ୍ୟ ରସ । ୧୪୩ ।

ସମାପ୍ତ ।



# ବିଶେଷ ସୁବିଧା !!



ଓଡ଼ିଶା ପେଟ୍ରିୟଟ ପ୍ରେସରେ ସକଳ ପ୍ରକାର ଟେକ୍ ଷାଉଡ଼, ଫାରମ, ନାନାପ୍ରକାର ପୁସ୍ତକ ଅତି ସୁନ୍ଦର ରୂପେ ସୁଲଭ ମୂଲ୍ୟରେ ଛପା ହୁଏ । ଏଠାରେ ଓ ଏହାର ଅନ୍ତର୍ଗତ କଟକ ବାଲୁବଜାର ପୁସ୍ତକାଳୟରେ ସକଳପ୍ରକାର ଟେକ୍-ଷାଉଡ, ସ୍କୁଲପାଠ୍ୟ ସୁଖପାଠ୍ୟ ନାଟକ ଉପନ୍ୟାସ ଆମୋଦ-ପ୍ରମୋଦଜନକ କବିତା ଓ ଗଳ୍ପ, ଚକସ୍ତା, ଜ୍ୟୋତିଷଶାସ୍ତ୍ର ଏବଂ ଧର୍ମପୁସ୍ତକମାନ ଏବଂ ସକଳପ୍ରକାର ଷ୍ଟେସନରୀ ଜିନିସମାନ ବିକ୍ରୟାର୍ଥ ରକ୍ଷିତ ଅଛି ।

ମଫସଲର ଗ୍ରାହକମାନଙ୍କ ପତ୍ର ପାଇଲା କ୍ଷଣି ଅବିଳମ୍ବେ ଭି: ପି: ପୋଷ୍ଟରେ ଆବଶ୍ୟକୀୟ ଜିନିସମାନ ପଠାଯାଏ । ଏବଂ ଆଶାନୁରୂପ କମିଶନ ଦିଆଯାଏ । ପରୀକ୍ଷା କରି ଦେଖିଲେ ଜଣାପଡ଼ିବ, ବିଶେଷ ଲେଖିବା ଅନାବଶ୍ୟକ ।

| | |
|---|---|
| ମହମ୍ମଦିଆବଜାର<br>କଟକ<br>ପୋ: ଚାନ୍ଦିନୀଚୌକ | ମ୍ୟାନେଜର<br>ଓଡ଼ିଶାପେଟ୍ରିୟଟପ୍ରେସ |

